# କଳ୍କୀ ଅବତାର

ଶ୍ରୀ ଅଚ୍ୟୁତାନନ୍ଦ ମହାପୁରୁଷଙ୍କର [illegible]
ବଉଳ ମାଳିକାଲେଖାରୁ ସଂଗୃହୀତ ନିର୍ଦ୍ଦିଷ୍ଟ ଭବିଷ୍ୟତ ଗୁପ୍ତ [illegible]
ଏଥିରେ ପ୍ରକାଶ ପାଇଅଛି । ଏହାର ଗୁପ୍ତରହସ୍ୟ ସବୁ
ଅବିଶ୍ୱାସୀମାନଙ୍କ ପାଖରେ ପ୍ରକାଶ ନ କରିବାକୁ ନିର୍ଦ୍ଦେଶ ଅଛି ।

ଛତରଦନ ପକ୍ଷ ହୋଇବ ଯେବେ
କଳଙ୍କୀର ଲୀଳା ପ୍ରକଟିବ ତେବେ
ନିଳ ପର୍ବତେ ପୃଥ୍ୱୀନାଶ ଯିବ
ପାଟଣାଉ ରଜ ତପ ବାହୁଡ଼ା ଥିବ ।

— ଶ୍ରୀ ସତ୍ୟନାରାୟଣ ମିଶ୍ର

ପ୍ରକାଶକ

## ଧର୍ମଜ୍ଞାନ ପ୍ରଚାର ମନ୍ଦିର

ମହମଦିଆ ବଜାର, କଟକ-୨

ଚତୁର୍ଥ ମୁଦ୍ରଣ-- ୫-୫-୧୯୭୧.

# ଅମର କୃମର ଓ ଅଚ୍ୟୁତାନନ୍ଦ ମାଳିକା

ଶ୍ରୀ ହରି ନିରାକାରଙ୍କୁ କହୁଛନ୍ତି—

ଶ୍ରୀ ହରି ଏକଇ ଦିନେ ଆସିଲେ ମୋ ପୁର,
ନିରାକାର ବୋଲି ବାଣୀ ଭାଷିଲେ ସତ୍ୱର ।
ବେଦବାଣୀ ଶୁଣି କର୍ଣ୍ଣେ ପାଞ୍ଚୋଟି ଅଇଲି,
ଅବାଡ଼ ଜ୍ୟୋତି ମଧ୍ୟରେ ଦରଶନ କଲି ।
ସେବେଳେ ସକଳ କଥା ବୁଝାଇଲେ ହରି,
କଳି ଯୁଗ ପାପ ଭାର ମୋ ଅଙ୍ଗରେ ଭରି ।
ଭକ୍ତମାନଙ୍କର ତ୍ରାଣ ରଖିବାର ପାଇଁ
ଲୀଳା ଖେଳା କରି ବି ମୁଁ ଶୂନ୍ୟ ମାର୍ଗେ ରହି ।
ପୁଣି ଶୁଣ ନିରାକାର ଦେଖି ଲୀଳା ମାନ,
ଯେଉଁ ରୂପେ କଳି ପାପ ହୋଇବ ଖଣ୍ଡନ ।
ନୀଳ ଧବଳ ରୂପ ମୋ କେଣେ ଲୁଚି ଯିବ,
କଳା ଧଳା ଅଶ୍ୱେ ଥିବୁ ଅବାଡ଼ ଡାକିବ ।
କାହିଁ ଜଳ ରୂପେ ମୁହିଁ ଜଗତ ନାଶିବ,
କାହିଁ ପବନ ରୂପରେ ସକଳ ଗ୍ରାସିବ ।
କାହିଁ ଯୋଗ ମାୟା ନେଇ ସଂହାର କରିବ,
କାହିଁ ନିଜେ ବିଶ୍ୱ ରୂପ ଧାରଣ କରିବ ।
କାହିଁ ମଉନ ବ୍ରତ ମୁଁ ଧାରଣ କରିବ,
କାହିଁ କାଳ ରୂପେ ମୁହିଁ ପାପିଙ୍କୁ ନାଶିବ ।
ଏ ମନ୍ତ୍ର ବେଳେ ମୋ ପାଶେ ପାଶେ ଜଗିଥିବ,
ଅବାଡ଼ ଜ୍ୟୋତିରେ ମୋତେ ଲୁଚାଇ ରଖିବ ।

ଏକା ଭକ୍ତଙ୍କ ପାଇଁ ଦର୍ଶନ ମିଳିବ,
ସକଳ ଘଟରେ ରହି ଶୂନ୍ୟେ ଖେଳୁଥିବ ।
କଳଙ୍କି ରାମ ରୂପେ ମୁହିଁ ହେବ ଜାତ,
କଟକ କଟୀରେ ମୋର ଅଛନ୍ତି ଭକତ ।
ତାହାଙ୍କୁ ରଖିବା ପାଇଁ ହେବ ତରତର,
ମହାନଦୀ ତଟରେ କରିବ ଖେଳ ଘର ।
ପୂର୍ବ ବର ମୋର ଯେତେ ଅନେକ ଭକତ,
ଗୁପତେ ରହି ଅଛନ୍ତି ଜାଣେ ଅନ୍ତର୍ଗତ ।
ତାଙ୍କ ନିମନ୍ତରେ ମୁହିଁ ହେବ ବିଶ୍ୱମୂର୍ତ୍ତି,
ଭକତଙ୍କର କଷଣ ମେଣ୍ଟାଇବ କ୍ଷିତି ।

× × ×

ଅମରାବତୀ କଟକ ନାମ ଜାଣ ହେବ,
ମହୋଦଧି ସେହି କାଳେ ମାଡ଼ିଣ ଆସିବ ।
ମହା ପ୍ରଳୟ ବୋଲିଣ ଜଗତ ଜାଣିବ,
ନୀଳାଞ୍ଚଳ ବାଙ୍ଖୀବଟ କମ୍ପିଣ ଉଠିବ ।

ଅମର ଜୁମର ବା ଯୁମର ସଂହିତାରେ ଶ୍ରୀ ଶ୍ରୀ ଅଚ୍ୟୁତା ନନ୍ଦ ଲେଖିଛନ୍ତି :— (ପ୍ରଥମେ ଶ୍ରୀ ହରି ନିରାକାରଙ୍କୁ କହିଲେ ଏଠାରେ ନିରାକାର ଅଚ୍ୟୁତଙ୍କୁ କହୁଅଛନ୍ତି ।)

ନିରାକାର କହୁଛନ୍ତି ଅଚ୍ୟୁତ ମୁଖ ଚାହିଁ
ଜୁମର ଚରିତ ଏବେ ଶୁଣ ମନ ଦେଇ ।
ମୋହ ପାଦଛୁଇଁ ଥାଅ ନ କହିବୁ କାହିଁ
କହିଲେ ଅପରାଧୀ ହେବୁ ହେତୁରଖ ଭାଇ ।
ହାସ୍ୟ ପରିହାସରେ ଯେ ବଂଶନାଶ ଯାଇ
ମୋର ପାଦ ଛୁଇଁ ଥାଅ ନ କହିବୁ କାହିଁ ।

ଗୁରୁଙ୍କର ଲୀଳା ଭୁଆଇ ସକଳେ ଶୋଷିବୁ,
ଆଦି ଅନାଦିଙ୍କ ମାୟା ଖେଳ ଶୁଆଇବୁ ।
ଇନ୍ଦ୍ର ଜାଲ ବିଦ୍ୟାମାନ ଭକ୍ତ ଦେଖାଇବେ,
ଘୋର କଳିନାଶ ହେଲା ବୋଲିଣ ବୋଲିବେ ।

ଶୁଣ ମୋ ଅଚ୍ୟୁତ ଭକ୍ତ ଶ୍ରୁତି କରି ସାର,
ଅମର ବଟ କଣ୍ଟକ ହେବ ସିନା ସାର ।
ହରିନାମ ଗୁଣୁଥିବୁ ହୃଦୟ ପଞ୍ଜର,
ଅଚ୍ୟୁତ ଦାସ ତୁ ହରି ପଦ ସେବାକର ।

ଅଚ୍ୟୁତ ଅଲେଖ ପରଂବ୍ରହ୍ମ ସନାତନ,
ନରାକାର ସେବ ହରି ପଦ କର ଧ୍ୟାନ ।

× × ×

କଳିଯୁଗେ ଦାରୁବ୍ରହ୍ମ ରୂପ ମୋ ହୋଇବ ।
ନୟନରେ ଦେଖିଲେ ପାପରୁ ମୁକ୍ତହେବ ।

(ଦାରୁବ୍ରହ୍ମ ଜଗନ୍ନାଥ ମହାପ୍ରଭୁଙ୍କ ଲକ୍ଷରେ କୁହାଯାଇଛି ।)

ଓଳିଏ ଯେ ରହିଥିବ ଶୁଣ ହେତୁ ଦ୍ୱାରେ
ଭାରତ ଯୁଦ୍ଧ ହୋଇବ ସେତିକ ବେଳରେ ।
ସେହି ଓଳିକରେ ନାଥ କଳିଶେଷ ହେବ
ସେ ଓଳିକେ ତେରମାସ ଭୋଗ ଯେ ହୋଇବ ।

ତେର ମାସିଆ ବର୍ଷ ଗୋଟିଏ ଓଳି ହିସାବରେ ଏଥିରେ ଗ୍ରହଣ କରାଯାଇଛି । ସନ୍ ୧୯୭୫ ମଧ୍ୟରେ ଯେଉଁ ତେର ମାସିଆ ବର୍ଷ ହେବ, ସେହି ବର୍ଷ ମଧ୍ୟରେ ଘୋର ଯୁଦ୍ଧ ହୋଇ ବହୁ ଜନ-କ୍ଷୟ ଘଟିବ ବୋଲି ଉପରୋକ୍ତ ଲେଖାରୁ ମନେହେଉଅଛି ।

ଅନାଦି ଅଲେଖ ନିରଞ୍ଜନ ପରଂବ୍ରହ୍ମ,
ଅବ୍ୟକ୍ତ ପୁରୁଷ ହରି ଜଗତ ଜୀବନ ।
ଯାହାଙ୍କର ଲୀଳା ଏହି ଜଗତେ ପୂରିଛି,
ତାହାଙ୍କୁ ଚିହ୍ନିଲେ ମନେ ଭୟ ନାହିଁ କିଛି ।
ସଦ୍‌ଗୁରୁ ପାଦେ ସେବି ହୁଅ ଶୁଦ୍ଧ ମତି,
ଶ୍ରୀ ଗୁରୁ ଆଜ୍ଞାରୁ କାହିଁ ନ ଥିବଟି ଭ୍ରାନ୍ତି ।
ଦାସ ଭାବେ ସେବା କରି ହୁଅ ଅଜାମର,
ଶୁଣ ତୁ ଅଚ୍ୟୁତ ପ୍ରଭୁ ମହିମା ବିସ୍ତର ।
କରୁଣା ସାଗର ପଦେ ଦିଅ ମତି ଡୋର,
ଅବଶ୍ୟ ଭେଟିବୁ ପ୍ରଭୁ କମଳାର ବର ।
ଓଡ଼ିଶା ଦେଶରେ ପ୍ରଭୁ ନାମ କରି ଜାରି,
ଶୂନ୍ୟେ ଉଡ଼ାଇବେ ଧ୍ୱଜା ପ୍ରଭୁ ଦଇତ୍ୟାରି ।
ଗିରି ମଠ ଗିରି ବଟ କର୍ମିଣ ଉଠିବ,
ଭକ୍ତମାନଙ୍କ କଷଣ କ୍ଷଣକେ ମେଣ୍ଟିବ ।
ସେ ହରି ପଦ ସ୍ମରଣ କରିହୋ ଅଚ୍ୟୁତ,
ଦେଖିବୁ ଗୁପ୍ତବିଷ ଲୀଳା ଅବ୍ୟକ୍ତ ମୁରତି ।
ପତିତପାବନ ପ୍ରଭୁ କମଳା ରମଣ,
ଭକତଙ୍କ ପାଇଁ କଲେ ଏ ଲୀଳା ଭିଆଣ ।
ସର୍ବଲୀଳା ମଧ୍ୟେ ସେ ଗୁପ୍ତବିଷ ଲୀଳା ସାର,
ନିରାକାର କହୁଛନ୍ତି ଅଚ୍ୟୁତ ଆଗର ।
ଖଣ୍ଡ ଗିରି ବଟ ପୁଟେ ଦେବ ଜନାର୍ଦ୍ଦନ,
ଟିରେ ଖାଡ଼ି ବାନ୍ଧି ପ୍ରଭୁ ରହିବେ ସେ ସ୍ଥାନ ।
କୋଟି କୋଟି ଭକ୍ତେ ସ୍ଥାନେ ସ୍ଥାନେ ହେବେ ମେଳ,
ସେତେବେଳେ ଜଗତ ସେ ଦିଶିବ ଉଜ୍ଜ୍ୱଳ ।

ନ କର ମନେ ଭ୍ରାନ୍ତି ଭଜ କମ୍ବୁ ପାଣି,
ଭକତ ବତ୍ସଳ ପଦ୍ମପାଦ ସେବ ଜାଣି ।
କଳି କଳୁଷ ନାଶନ ପ୍ରଭୁଙ୍କର ଭେଟ,
ଅବଶ୍ୟ ଭେଟିବୁ ଭକ୍ତ ମନେକର ଆଣ୍ଟ ।
ଗୁପ୍ତ ସ୍ଥାନ ମାନ ସେହୁ ବେଳରେ ଫିଟିବ,
ଏକାମ୍ର ବନର ଶୋଭା କେ ଅବା କହିବ ।
ସତ୍ୟ ଭାଷା ଲୋକମାନେ ମୁଖରେ ଭାଷିବେ,
ହିଂସା କପଟ ଯେ ବେଳେ ସବୁ ପାଶୋରିବେ ।
ସାଧୁ ଜନମାନଙ୍କର ନାମ ଟାଣ ହେବ,
ଦୁଃଖୀ ଲୋକଙ୍କର ଦୁଃଖ ସେ କାଳେ ମେଣ୍ଟିବ ।
ଶ୍ରୀ ହରିଙ୍କ କୃପାରୁ ମୁଁ କହିଲି ଏ ମାନ,
ଅଚ୍ୟୁତ ଦାସ ତୁ ଭଜ ଜଗତ ବନ୍ଦନ ।

ଅଚ୍ୟୁତାନନ୍ଦ ମାଳିକାରୁ ସଂଗୃହୀତ :—

ଏଥିରେ ଲେଖା ଥିବା ପୂର୍ବ ଅଧ୍ୟାୟମାନଙ୍କରୁ ଦେଖିବାକୁ ମିଳେ ଯେ ଶ୍ରୀହରି, ନାରଦଙ୍କୁ ଯାହାସବୁ କହିଥିଲେ । ନାରଦ କାର ଅଚ୍ୟୁତଙ୍କୁ କହିଲେ ଏବଂ ଅଚ୍ୟୁତ ଏଠାରେ ତାଙ୍କ ଶିଷ୍ୟ ରାମଚନ୍ଦ୍ରଙ୍କୁ କହୁଅଛନ୍ତି ।

କହୁଛନ୍ତି ରାମଚନ୍ଦ୍ର ଶ୍ରୀଗୁରୁଙ୍କୁ ଚାହିଁ,
କଳିଯୁଗ ଲୀଳା ମୋତେ କହିବ ବୁଝାଇ ।
କେଉଁ ଗ୍ରାମେ ଜନ୍ମ ତୁମ୍ଭେ ହୋଇବ ଆପଣ,
କହନ୍ତି ହରି ଅଚ୍ୟୁତ ରାମଚନ୍ଦ୍ର ଶୁଣ ।
ଘୋର କଳି ମହାଘୋର ତମ ଆଚ୍ଛାଦିବ,
ଘଟ ଗୁପ୍ତ ବହିବୁ ଯେ କେହି ନ ଜାଣିବ ।

ଘରଣିଆ ପଣରେ ଯେ ହରୁଥିବ ଧନ,
ଘୋଷେ ଧନ ଅଚ୍ୟୁତ ଯେ ଏକଥା ପ୍ରମାଣ ।
ନପାଇବେ ଭକ୍ତେ ଖୋଜି ଭ୍ରମି ନାନାଦେଶ,
ନଜେ ଖ୍ୟାତ କରିବୁ ଯେ ଭୁଞ୍ଜି ରାମ ଦାସ ।
ଲୀଳା କରୁଥିବ ମୁଁ ଯେ ଗୁପତ ଭାବରେ,
ନିଷ୍ଠା କରି କହିଲେ ଯେ ଅଚ୍ୟୁତ ଗୀତରେ ।

ଚହଟିବ ଲୀଳା ଭୁ ବ୍ଳଶରେ ମିଶାଏକ,
ଚଢ଼ା ଝନ ଶୁନ ଚହ୍ନିଁ ଜେତେ ହେଲଠିକ୍ ।
ଚଳଯାଉ ଘେର କଳ ଦଳଦେବେ ମିଳି,
ଚେତାଇଣ ଗୀତ ଛନ୍ଦେ ଅଚ୍ୟୁତ ଯେ ଭଳି ।
ଛିତିମଧ୍ୟେ ଯେତେ ଭକ୍ତ ଜନ୍ମ ହୋଇଛନ୍ତି,
ଛୁଡ଼ ଯିବ ତାହାଙ୍କର ମନୁ ଭୟ ଭ୍ରାନ୍ତି ।
ଛାମୁରେ ମିଳବେ ଉଦ୍‌ବେଗ ବେଗ ହୋଇ,
ଛ ଛନ୍ଦେ ଭଣିଲେ ଗୀତେ ଅଚ୍ୟୁତ ଯେ କହି ।

ଯେବେ ଧ୍ୱଜା ଉଡ଼ିବ ହୋ ରଜା ପାଟଣାର,
ଜାଣିବୁ ନଷ୍ଟପ୍ରୁ ବେଳ ହୋଇଲା ନିକର ।
ଜାଣିଥିଲ ଭକ୍ତେ ଦେଖି ହୋଇବେ ତୃପତ,
ଜାଣିଥାଅ ଠିକେ ଗୀତେ କହିଲେ ଅଚ୍ୟୁତ ।
ଝଞ୍ଜା ମଣିବେ ଦୁଷ୍ଟେ ଅଜ୍ଞାନେ ମାତିବେ,
ଝଗଡ଼ା କଥା ବଖାଣି ଭକ୍ତଙ୍କୁ ନିନ୍ଦିବେ ।
ଝାସଦେବେ କାଳହଟେମ ଝିମିଟକେ ଯାଇ,
ଝାମ ଗଲ ପ୍ରାପ୍ତେ ହେବେ ଅଚ୍ୟୁତ କହଇ ।
ନାଶଯିବେ ଦୁଷ୍ଟ ଲୋକେ ହେବ ହାଣ ଗୋଳ,
ଲୀଳା ଦେଖୁଥିବେ ବସି ଅଚ୍ୟୁତ ପାମର ।

ଟାଣ କରି ଦେଖୁଥିବେ ଯେଉଁ ଲୋକମାନେ,
ଟଳମଳ ହୋଇବେ କଳଙ୍କି ସନ୍ନିଧାନେ ।
ଟାକ ଅସ୍ତ୍ର ମହାମାୟୀ ଖପର ପତାଇ,
ଟାଣ ସଙ୍ଗୀ ଦେବ ହନେ ଅଚ୍ୟୁତ କହଇ ।
ଠକଙ୍କାନେ ଭସୁଥିବେ ଥୋକେ ସାଧୁଜନ,
ଠାବ ନ ପାଇଣ ବଣା ହୋଇବେ ସେ ପୁଣ ।
ଠକ ବୃତ୍ତି ଆଚରଣ ଠୋକର ଖାଇବେ,
ଠିକେ କହିଲେ ଅଚ୍ୟୁତ ଠାବ ନ ପାଇବେ ।
ଡେରଜଣ ଯେତେବେଳେ ହୋଇଯିବେ ମେଳ,
ତେତେବେଳେ ଲାଗିଯିବ କଳିଯୁଗ କଳ ।
ଜଳରେ ତଇଳ ପ୍ରାପ୍ତ ରହିଥିବ ମୂର୍ଚ୍ଛି,
ହନେ ଭେଟ ହୋଇବଟି ଅଚ୍ୟୁତ କହଇ ।
ଥାନ ଛାଡ଼ି ବରଜା ଯେ ହୋଇବେ ବାହାର,
ଥିବେ ତାଙ୍କର ସଙ୍ଗତେ ଯେତେ ସ୍ୱଚ୍ଛଚର ।
ଥିଲା ଲୋକମାନଙ୍କୁ ଯେ ଖାଇବେ ଗୋଡ଼ାଇ,
ଥୟ ନରହିବ ହନ ଅଚ୍ୟୁତ କହଇ ।
ହନୁହନ ଗୋଳ ହେବ ଅପାରୁ ଅପାର,
ହନେ ହଣିବ ଯେ ରାମ ମନେ ହେତୁକର ।
ଦେଖୁ ଦେଖ ସୈନ୍ୟ ଦଳ ପଶିବେ ଝସାଇ,
ହହୁଡ଼ି ଲାଗିବ ହନେ ଅଚ୍ୟୁତ କହଇ ।

ଭାବାର୍ଥ :— (ବିପ୍ଳବର ମଶାଲ୍ ଜଳଉଠିବ)

ଧରି ମାରୁଥିବେ ଜଣେ ଜଣେ ସୈନ୍ୟ ବଳ,
ଧ୍ୱଂସିବେ ଦମନ ବଳ କରି ରଣ ଗୋଳ ।
ଷୋଡ଼ଶରେ ଥିବୁ ବାବୁ ଖ୍ୟାତ ନକରିବୁ
ଷଷ୍ଠିମଧ୍ୟେ କାଲ ଜଡ଼ା ପ୍ରାପ୍ତେ ହୋଇଥିବୁ ।

ମାଳିକା :—

ସକଳ ସଗରୁ ଦେବତା ଦେଖା ଦେବେ ବାହାର
ନରଅଙ୍ଗେ ମିଳି ଖେଳିବେ କଟକ ଯେ କଟୀର
କ୍ଷଣକରେ ଗୁଡ଼ ପଳାଇଯିବେ ନିଜଟା ଅଂଶ
ଜଗନ୍ନାଥ ପ୍ରଭୁ କଟକେ ହୋଇବେ ଯେ ପ୍ରବେଶ ।
ସନ୍ଥଙ୍କ ମଧ୍ୟରେ ମିଳଣ ଦେବେ ପ୍ରଭୁ ଦର୍ଶନ
ସାଧୁମାନେ ଚଳି ସେବିବେ ପ୍ରଭୁ ହେବେ ବନ୍ଦନ ।
ଜୟଧ୍ୱନି ଗୋଳ ଶବଦ ଜଗତରେ ପୂରିବ
ଯୋଗମାୟା ଖେଳ କୁହୁକ ଜାଲ ପ୍ରାପ୍ତ ହେବ ।
ଦାମ୍ଭିକ କୁଟୀଳ କପଟୀଙ୍କର ବଚନମାନ
ସେକାଳେ ହୋଇବ ଖଣ୍ଡନ ପ୍ରଭୁଥିବେ ମଣ୍ଡନ ।

ଅମର ଜୁମର :—

ଏତେବେଳରେ ଦେବୀମାନେ । ମାନବ ଦେହରେ ସେମାନେ ॥
ମାତଙ୍ଗୀ ସ୍ୱରୂପ ହୋଇବେ । କାଳସୀ ହୋଇଣ ନାଚିବେ ॥
କେ ଅବା ବୃହନ୍ନଳା ସଙ୍ଗେ । ଭ୍ରମିବେ ସେହ୍ୱି ନାନାରଙ୍ଗେ ॥
କଳଶେଣ୍ଡରେ ଏହା ହେବ । ନୟନେ ସବୁ ହେ ଦେଖିବ ॥
× × × ×
ପରୀକ୍ଷା ଥିବ ଚେରମାସ । ଆମ୍ଭେ ଯେ ମାନବ ଅବଶ୍ୟ ॥
ତୁମେ ମାନବ ହୋଇଥିବ । ମାନବ ଦେହରେ ଖେଳିବ ॥

ଦେବତାମାନେ ଅଯୋନି ସମ୍ଭୂତ ତେଣୁ ମନୁଷ୍ୟମାନଙ୍କ ମଧ୍ୟରେ ଉପଯୁକ୍ତ କ୍ଷେତ୍ର ଦେଖି ଆବର୍ଭିବ ହୁଅନ୍ତି । ବର୍ତ୍ତମାନ ଦେବାଦେବୀମାନେ ମନୁଷ୍ୟମାନଙ୍କ ମଧ୍ୟରେ ଅବତରଣ କରିଅଛନ୍ତି ବୋଲି ଦୈବଜ୍ଞମାନେ କହୁଅଛନ୍ତି ।

ଏସବୁ ମାନବ ଦେହରେ । ମେଳହୋଇବେ କଣ୍ଠକରେ ॥
ଏସବୁ ବାହାର ହୋଇବେ । କଳି ଶେଷରେ ମେଳହେବେ ॥
ମେଳ ହୋଇବେ ନାଗସବୁ । ଜଗନ୍ନାଥ ଯେ ହେବେ ଧବୁ ॥
ତେତେବେଳରେ ଗୋଳମାଳ । ଗ୍ଲେର ଯେ ହୋଇବେ ପ୍ରବଳ ॥
କେହ୍ବ କାହାକୁ ନ ମାନବେ । ଘରେ ଘରେ ସେ ଠେଙ୍ଗୀ ହେବେ ॥

× × × ×

କଳିଯୁଗ ଲୋକମାନେ ତିନିଭାଗ ନାଶ
ଚତୁର୍ଥଭାଗରୁ ଯେ ରହିବ ଅବଶେଷ

ସେଥିରେ ଆହୁରି ଲେଖା ଅଛି :—

ଅଙ୍ଗ ବଙ୍ଗ କଳିଙ୍ଗର ସନ୍ଥନ ଭକତ
ଏସବୁ ହୋଇବେ ନାଥ ଯେଉଁଦିନ ଯୁକ୍ତ ।
ସମସ୍ତେ ବସିଣ ତର୍କି ବିଗ୍ଭର କରିବେ
ମେଳାସାରଣ ଯେଥିରେ ବାହାର ହୋଇବେ ।
ମାର୍ଗଶୀର ନବମୀ ଯେ ହେବ ଗୁରୁବାର
ସେହି ଦିନ ସମସ୍ତେ ଯେ ହୋଇବେ ବାହାର ।

୧୯୬୮ ସନ ମାର୍ଗଶୀର ମାସର କୃଷ୍ଣ ଓ ଶୁକ୍ଳପକ୍ଷ ନବମୀ ତିଥୀ ଦୁଇଟି ଗୁରୁବାର ଦିନ ପଡ଼ିଥିଲା । ଏଭଳି କେବେହେଲେ ପଡ଼ିନାହିଁ କି କେବେ ପଡ଼ିବନାହିଁ । ଏଣୁ ତେରଦିନିଆ ପକ୍ଷ ପରେ ଏହି ଯୋଗ ପଡ଼ିବା ଦିନଠାରୁ କ୍ରମେ ଦେବଦେବୀମାନେ (ମନୁଷ୍ୟ) ଭକ୍ତମାନଙ୍କ ଦେହରେ ଆବିର୍ଭାବ ହେବାର କଥା ।

ତେତେବେଳେ ସନ୍ଥମାନେ ଆନନ୍ଦ ହୋଇବେ
ନିତ୍ୟ ରାହସର କଥା ମନରେ ପାଞ୍ଚିବେ ।

ଗୁପ୍ତଗ୍ରୀ ଗ୍ରନ୍ଥସବୁ ଚର୍ଚ୍ଚ କେତେଦିନ ହେବ
ଅମର ଜୁମର ପଦ ଚର୍ଚ୍ଚରେ ପଡ଼ିବ ।

× × ×

ଗୁପ୍ତଗ୍ରୀ ଗ୍ରନ୍ଥସବୁର ସ୍ଥାନ । ଷୋଳସହସ୍ର ବୃନ୍ଦାବନ ॥
କାଳଆଟବୋଦାରେ ଗୁପ୍ତଗ୍ରୀ । ଅଷ୍ଟସଖୀଏ ଥିବେ ପୂରି ॥
ଆମ୍ଭେ ଯେ ତଜପାଣେ ଥିବୁ । ଗୁପ୍ତଗ୍ରୀ ଗ୍ରନ୍ଥାସ କରିବୁ ॥
ହରିବଦ ସ୍ୱମାଦ ଭଜନ । ସମସ୍ତ ସ୍ୱରରେ ଗାୟନ ॥

(କାଳଆଟବୋଦାରେ ଆଠଗୋଟି ବଡ଼ ବଡ଼ ଦେବୀ ମୂର୍ତ୍ତି ନିର୍ମିତ ହୋଇଛନ୍ତି ।)

ସେଠାରୁ ଭଜନ ଶରୀର । ଭଜିବେ ସିନା ସବୁ ନର ॥

ଏହି ସମୟ ଠାରୁ ପ୍ରତ୍ୟେକ ମାନବ ଈଶ୍ୱରଙ୍କର ନାମ ଭଜନ କୀର୍ତ୍ତନାଦ କରି ଜୀବନ ଅତିବାହିତ କରିବେ । ଯେଉଁଥିରେ ପ୍ରଳୟ ସମ୍ପର୍କରେ ନିମ୍ନମତେ ଉଲ୍ଲେଖ ଅଛି ।

ସେହିଦିନ ବାସବ ଯେ ହେବ ଚମତ୍କାର
ଅଣସ୍ତୃଣ ମତରେ ଯେ ବହିବ ସମୀର ।
ବାତଘାତ ପାଇ ମେରୁ ଅଚଳ ଟଳିବ
ଜନ ବୃନ୍ଦଗରୁ ଯେ ଘରେ ନାଶଯିବ ।
ସତ୍ୟ ଆଚରଣେ ରହିଥିବେ ଯେଉଁମାନ
ସେମାନେ ପାଇବେ ସିନା ଆମ୍ଭ ଦରଶନ ।

ଏହିଭଳି ବହୁ ଉପାଦେୟ ବିଷୟମାନ ଯେଉଁଥିରେ ଉଲ୍ଲେଖ ଅଛି । ଯାହାସବୁ ଘଟିବାର କଥା ଆରମ୍ଭ ହୋଇ ଯାଇଅଛି । ଠିକଣା ସମୟରେ ଏସବୁ ବିଷୟ ବର୍ତ୍ତମାନ ଲୋକ ଲୋଚନକୁ ଅଣାଗଲା । ଏସବୁ ଜାଣିବା ପରେ ପ୍ରତ୍ୟେକ ନିଜ ନିଜର କର୍ତ୍ତବ୍ୟ ପନ୍ଥା ଠିକ୍ କରି ସତ୍ପଥରେ ଚାଳିତ ହେବା ଦରକାର ।

ଶ୍ରୀ ଅଚ୍ୟୁତାନନ୍ଦଙ୍କର ଅମର କୃତିର ଗୋଟିଏ ପ୍ରଧାନ ଗ୍ରନ୍ଥ ଏହି ପୁସ୍ତକ ବହୁ ଦିନରୁ ପ୍ରକାଶ ପାଇଛି ଏବଂ ଏହି ପୁସ୍ତକ ସମ୍ପର୍କରେ ପ୍ରାୟ ପ୍ରତ୍ୟେକ ଓଡ଼ିଶାବାସୀ ଜାଣିଥିବେ । ଏଥିରେ ଯାହା ସବୁ ସଠିକ ପ୍ରମାଣ ଲେଖା ଥିଲା ବର୍ତ୍ତମାନ ସେ ଠିକଣା ସମସ୍ତ ଆସି ଯାଇଥିବା ପ୍ରମାଣ ମିଳୁଛି । ଏହିଭଳି ଶ୍ରୀ ଅଚ୍ୟୁତା-ନନ୍ଦଙ୍କର ମାଳିକା ଓ କଳିକଳ୍ପ ଗୀତାରେ ଯାହାସବୁ ଯୁଗାନ୍ତ ବିଷୟରେ ଲେଖା ଥିଲା ସେ ସବୁ ମଧ୍ୟ ଘଟିଗଲାଣି । ଯଥା :—

ନୃପତିମାନେଟି ମର୍ତ୍ତ୍ୟେ ନ ରହିବେ କେହି
ନୟନେ ଦେଖିବୁ ଶୁଣ ଅଚ୍ୟୁତ କହଇ ।

× × ×

ଠିକଣା ଅଚ୍ୟୁତ ଭଣେ
୦ ତିନ ବାମେ ପାଞ୍ଚ ରଖିଲେ ଯେ
ଠିକ ଯିବ ମୀନ ଶନି ଭଲେ, ସୁଜନେ ହେ ।

ଚହଟିବ ଲୀଳା ଭୁ ବୃତ୍ତରେ ମିଶା ଏକ
ଚଢ଼ା ତିନ ଶୂନ ଚର୍ଚ୍ଚି ଯେତେ ହେଲା ଠିକ ।

ବଳିଯାଇ ଘୋର କଳି ଦଳିଦେବେ ମିଳି
ଚେତାଇ ଗୀତ ଛନ୍ଦେ ଅଚ୍ୟୁତ ଯେ ଶୁଣି ।

କଳିଯୁଗାବ୍ଦ ୫,୦୦୦ ବର୍ଷକୁ ଲକ୍ଷ କରି ଲେଖା ଯାଇ ଅଛି । ଏ ସବୁର ଅର୍ଥ ଆମ୍ଭ ପ୍ରଣୀତ "ତେରଦିନଆ ପକ୍ଷ" ପୁସ୍ତକରେ ସ୍ପଷ୍ଟଭାବେ ଲେଖାଅଛି, ପଢ଼ି ଜାଣିପାରିବେ) ଦେଶ ସ୍ୱାଧୀନ ହେବା ପରେ ରାଜା ମହାରାଜାଙ୍କଠାରୁ ସମସ୍ତ କ୍ଷମତା କାଢ଼ି ନିଆଗଲା । ଏହି ଘଟଣା ପରେ ୧୯୬୭ରେ ମୀନ ରାଶିରେ ଶନିଗ୍ରହ ଆସିଲା ବେଳକୁ କଳିଯୁଗ ୫୦୦୦ ବର୍ଷ ପରିପୂର୍ଣ୍ଣ ହୋଇଅଛି । ସେହି

ସମୟରେ କଳିଯୁଗ ଶେଷ ହୋଇଯିବ ବୋଲି ଏଥିରୁ ପ୍ରମାଣ ମିଳୁଛି ଏହି ଘଟଣାକୁ ଲଗୁ ହେବା ଭଳି ଅମର ଜୁମରରେ ଲେଖାଅଛି ।

ବୈଶାଖ ଶୁକ୍ଳ ଅଷ୍ଟମୀ ଗୁରୁବାରଦିନ
ସେହିଦିନ କଳିଗୁର ହୋଇବ ସମ୍ପୂର୍ଣ୍ଣ ।

× × ×

ସେ ଦିନ ହେବ ଗୁରୁବାର । ମୀନ ଶନି ଯେ ସେ ଦିନର ॥
ବୈଶାଖ ଅଷ୍ଟମୀ ସେଦିନ । ଶୁକ୍ଳପକ୍ଷରେ ଯେ ପ୍ରମାଣ ॥

× × ×

ମୀନ ରାଶୀରେ ଶନି ଥିବା ସମୟରେ ବୈଶାଖ ମାସର ଶୁକ୍ଳ ଅଷ୍ଟମୀ ତିଥି ଗୁରୁବାର ଦିନ କେବଳ ୧୯୭୨ରେ ଘଟିଥିଲା । ଏଭଳି ଯୋଗ ଏଥିପୂର୍ବରୁ କେବେହେଲେ ପଡ଼ି ନ ଥିଲା ଏଣୁ ସେହିଦିନ ୫୦୦୦ ବର୍ଷିଆ କଳିଗୁଗ ଶେଷ ହୋଇ ସତ୍ୟଯୁଗ ପଦାର୍ପଣ କରିଥିବା ଏଥିରୁ ସ୍ପଷ୍ଟଭାବେ ପ୍ରମାଣ ମିଳୁଅଛି ।

ଏହି ସମୟ ପରେ ଭଗବାନ କଳ୍କିଙ୍କର ଲୀଳା ଅଗୋଚର ଭାବରେ ଗୂଳିବ ବୋଲି ଏଥିରୁ ପ୍ରମାଣ ମିଳୁଛି ଯଥା :—କଳିକଳ୍ପ ଗୀତାରେ ଲେଖା ଅଛି—

ତେର ଦିନ ପକ୍ଷ ହୋଇବ ଯେବେ
କଳଙ୍କୀର ଲୀଳା ଲଗିବ ତେବେ ।
ଜଳ ପବନେ ପୃଥ୍ୱୀ ନାଶ ଯିବ
ପାଟରେ (ପୁରୀର) ରାଜା ଯେ ବାତୁଳ (ମାତାଲ) ଥିବ
ପୁରୀ କ୍ଷେତ୍ରରେ ବଇଷ୍ଣବ ମେଳା
ଗୁପତେ ହେବ କଳଙ୍କୀର ଖେଳା ।
କାହିଁ ନ ରହିବ ବରଜ ବାଳ
ବାତୁଳ ମତରେ ଥିବେ ଭୂପାଳ ।

ଗତ ୧୯୬୮ ଅଗଷ୍ଟ ମାସରେ ଏହି ତେର ଦିନଆ ପକ୍ଷ ପଡ଼ିଥିଲା । ସେହି ତେରଦିନ ମଧ୍ୟରେ ଇରାନ ଦେଶର ଦୁଇଶହ ବର୍ଗମାଇଲ, ଅଞ୍ଚଳ ଭୂକମ୍ପରେ ଧ୍ୱଂସ ହୋଇ ଯାଇଥିଲା । ପ୍ରାୟ ୨° ହଜାରରୁ ଅଧିକ ଲୋକଙ୍କର ପ୍ରାଣହାନି ଘଟିଥିଲା । ତାପରେ ପରେ ବଙ୍ଗଳା, ବହାର ଓ ଆସାମରେ ଝଡ଼, ବର୍ଷା, ବନ୍ୟା ଫଳରେ ବହୁ ଜନ କ୍ଷୟ ଘଟିଲା । ତା'ପରେ ଓଡ଼ିଶାରେ ମଧ୍ୟ ଝଡ଼ ବର୍ଷାରେ ବହୁ ଗୋରୁଗାଈ ଓ ଧନ ଜନ ନଷ୍ଟ ହେଲେ । ଏଣୁ ଶ୍ରୀ ଅଚ୍ୟୁତଙ୍କ ପ୍ରମାଣ କେବେ ମିଥ୍ୟା ହୋଇନାହିଁ । ଚଳିତ ବର୍ଷ ଆହୁରି ଉପ୍ଲାବହ ହେବା ପ୍ରମାଣ ମିଳୁଛି । ଭଗବାନ କଲ୍କୀଙ୍କର ଲୀଳା ପ୍ରବଳ କଳୁ ବର୍ତ୍ତମାନ କେହି ଜାଣି ପାରିବେ ନାହିଁ ବୋଲି ଏଥିରୁ ଜଣାଯାଉଛି । ୧୯୭୫ ପରଠାରୁ ଲୋକେ ଜାଣିବାକୁ ପାଇବେ । ସନ ୧୯୬୮ରେ ହୋଇଥିବା ତେର ଦିନଆ ପକ୍ଷ ଶୁକ୍ଳ ପକ୍ଷରେ ପଡ଼ିଥିଲା ପୁନର୍ବାର ୧୯୭୧ (ଜୁନ) ଆଷାଢ଼ ମାସ କୃଷ୍ଣ ପକ୍ଷରେ ତେରଦିନଆ ପକ୍ଷ ଘଟୁଥିବା ଯୋଗୁଁ ଉକ୍ତ ସମୟ ଠାରୁ ଆରମ୍ଭ କରି ତିନି ବର୍ଷ ମଧ୍ୟରେ ପ୍ରଳୟଙ୍କର ଉତ୍ପାତ ଦେଖାଯିବ, ନିମ୍ନଲିଖିତ ପ୍ରମାଣଦେଖନ୍ତୁ ।

ଶ୍ରୀ ଅଚ୍ୟୁତା ନନ୍ଦଙ୍କ କୃତ :—

**ଶିବ କଳ୍ପ ଓ ନବଖଣ୍ଡ ନିର୍ଘଣ୍ଟରେ** ସ୍ପଷ୍ଟଭାବେ ଉଲ୍ଲେଖ ଅଛି :—(ପ୍ରଥମ ନିର୍ଘଣ୍ଟ)

ମେଷକୁ ବୃଷ, ସଙ୍ଗତେ ମିଳାଇବୁ, ମିଥୁନରେ ପ୍ରକାଶିଣ,
ସପ୍ତର୍ଷି ମଣ୍ଡଳ, ଦକ୍ଷିଣରେ ଲେଖ, ନ କହ ମୋହର ଗୁଣ ।
ମୀନ ଶନି ଗୁରୁ-ବାରରେ ପଡ଼ିବ, ଏହି ଅଙ୍କେ ଧ୍ରୁବ ଧ୍ରୁବ,
ମିଥୁନ ମାସରେ, ତେର ଦିନେ ପକ୍ଷେ, କାଳ ଧରଣୀ ଗ୍ରାସିବ ।

ଏହାର ଭାବାର୍ଥ ହେଉଛି ସପ୍ତର୍ଷି ଦକ୍ଷିଣାୟନରେ ଥିବା ବେଳେ ଶନି ଗ୍ରହ ମୀନ ରାଶିରେ ଅବସ୍ଥାନ ସମୟ ମଧ୍ୟରେ ଗୁରୁବାରଦିନ କଳିଯୁଗ ଶେଷ ହେବ ଏହା ଧ୍ରୁବ ସତ୍ୟ (ଏହାର ସ୍ପଷ୍ଟ ପ୍ରମାଣ ଏହି ପୁସ୍ତକର ୧୨ ପୃଷ୍ଠାରେ ଅମର କୂର୍ମର ପୁସ୍ତକରୁ ସଂଗୃହିତ ହୋଇ ଲେଖା ଯାଇଛି) ଶନି ମୀନରୁ ମେଷ ତାପରେ ବୃଷ ରାଶିକୁ ଆସିବା ପରେ ମିଥୁନ ମାସରେ ତେରଦିନିଆ ପକ୍ଷ ପଡ଼ିବ । ସେହି ସମୟରେ ପୃଥିବୀକୁ କାଳ ଗ୍ରାସ କରିବ । ଯେତେ ବେଳେ ଶନି ମିଥୁନ ରାଶିକୁ ଯିବେ, ସେତେବେଳେ ସମସ୍ତ ଗୁପ୍ତ ତଥ୍ୟ ପ୍ରକାଶ ହେବ, ଏହା ପରେ ଭଗବାନ କଳ୍କୀଙ୍କୁ ଲୋକେ ଚିହ୍ନି ବାକୁ ପାଇବେ ।

ଉପରୋକ୍ତ ଲେଖାଟିରେ ସ୍ପଷ୍ଟଭାବେ ମିଥୁନ ମାସରେ ପଡ଼ୁଥିବା ତେର ଦିନ-ଆପକ୍ଷକୁ ଲକ୍ଷ କରି ଶ୍ରୀ ଅଚ୍ୟୁତା ନନ୍ଦ ଏହି ସମୟଠାରୁ କଳ୍କୀଙ୍କର ଲୀଳା ଖେଳା ଆରମ୍ଭ ହୋଇଯିବ ବୋଲି କଳି କଳ୍ପ ଗୀତାରେ ଲେଖି ଅଛନ୍ତି । ଯାହା କି ପୂର୍ବ ପଦ୍ୟାଂଶରେ ପୃଷ୍ଠା ୧୨ରେ ଉଲ୍ଲେଖ କରି ଅଛୁ ।

ଚଳିତ ବର୍ଷ ମେଷରୁ ବୃଷରାଶିକୁ ଶନିଗ୍ରହ ଚଳନ ହୋଇ ଅଛନ୍ତି ଏବଂ ଏହି ବର୍ଷ ତେର ଦିନିଆ ପକ୍ଷ ମିଥୁନ ମାସରେ ପଡ଼ୁ ଅଛି । ଏଣୁ କରି ଏହି ପକ୍ଷ ପଡ଼ିବା ପୂର୍ବରୁ ସେହି ସମୟ ମଧ୍ୟରେ ଏବଂ ତା ପରେ ପୃଥିବୀରେ ଭୟାବହ ପରିସ୍ଥିତି ସୃଷ୍ଟି ହେବାର ସୂଚନା ମିଳୁ ଅଛି ଏବଂ ଭଗବାନ କଳ୍କୀ ଦେବଙ୍କର ଲୀଳା ଆରମ୍ଭ ହୋଇଯିବ । ଏହି ପୁସ୍ତକର ପ୍ରଥମ ପୃଷ୍ଠାରେ ଲେଖା ଅଛି :—

କାହିଁ ଜଳରୂପେ ମୁହିଁ ଜଗତ ନାଶିବ,
କାହିଁ ପବନ ରୂପରେ ସକଳ ଗ୍ରାସିବ । ଇତ୍ୟାଦି

ଏହି ଭଳି ଜଳ ପବନେ ପୃଥିବୀ ନାଶ ଯିବ ।

ଶିବ କଳ୍ପ ପୃଷ୍ଠା ୩ରେ ଭୃଗୁପ୍ରକାଶରେ ଉଲ୍ଲେଖ ଅଛି :—

ଓଡ଼ିଶା ଦେଶରେ, ଜଳବନ୍ଧ ହେବ, ପ୍ରାନ୍ତ ଆଦ୍ୟ ମଧ୍ୟକାଳେ
ପାଣ ପଠାଣ ଯେ, ଶୃଙ୍ଖଳ ବାନ୍ଧିବେ, ଏକଥା ହୋଇବ ତାଳେ ।
ହେଲା ହେଲା ବୋଲି, ମଣ୍ଡ ଉଚ୍ଛୁଳିବ, ହେଳାରେ କାଟିବେ ବନ
ହରି ଭାବ ରସ, କେହି ନ ଜାଣିବେ, କର୍ମକାଣ୍ଡେ ହେବେ ଲୀନ ।

ଭାବାର୍ଥ :—ଏହି ତେର ଦିନିଆ ପକ୍ଷର ଆଦ୍ୟ, ମଧ୍ୟ ଏବଂ ଶେଷଭାଗରେ ଓଡ଼ିଶା ଦେଶରେ ଜଳବନ୍ଧ ହେବ ଅର୍ଥାତ ଝଡ଼, ବର୍ଷା, ବନ୍ୟା କମ୍ବା ସମୁଦ୍ର କୂଳ ଲଙ୍ଘନ କାରଣରୁ ଜଳାର୍ଣ୍ଣବ ହୋଇଯିବ । ଏଣୁ ବିଶେଷ କରି ଏହାର କୁପ୍ରଭାବ ମିଥୁନ ରାଶିସ୍ଥ ଦେଶମାନଙ୍କ ଉପରେ ପଡ଼ିବ । ଏହା ଛଡ଼ା ବିହାର, ପୂର୍ବ ଓ ପଶ୍ଚିମ ବଙ୍ଗ, ଆସାମ, ଓଡ଼ିଶା, ଆନ୍ଧ୍ର, ମାନ୍ଦ୍ରାଜ, କେରଳ, ବର୍ମା, ଇଣ୍ଡୋଚିନ, ଜାପାନ, ଚିନର ଦକ୍ଷିଣପୂର୍ବ ଭାଗ ଉପରେ ଏହାର ଭୀଷଣ ମନ୍ଦ ଫଳ ପଡ଼ିବ ।

ଏହି ସମୟଠାରୁ ପୃଥିବୀରେ ଲୋକମାନେ କହିବାକୁ ଲାଗିବେ ଯେ ମହାପୁରୁଷମାନେ କହି ଯାଇଥିବା ଭବିଷ୍ୟତବାଣୀ ସବୁ ଏଥର ଘଟିବାର ଆରମ୍ଭ ହେଲା ।

ଅମର ଜମର :—ଅଷ୍ଟାଦଶ ଅଧ୍ୟାୟ

ଅଷ୍ଟସଖୀଙ୍କ ପରୀକ୍ଷଣ । ସେ ପକ୍ଷ ହେବ ତେରଦିନ ॥
ସେ ଦିନ ରହି ଯୋଡ଼ଙ୍କର । ପଡ଼ିବ ବାଙ୍କି ମୁହାଣର ॥
ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ । ଏ କଥା ହେବ ସେ ଦିନରେ ॥
ଯେଝା ଚରକେ ନେଝା ଥିବେ । କେହି କାହାକୁ ନ କହିବେ ॥
ପୃଥ୍ୱୀ ଯେ ହାଲି ହୋଇ ହେବ । ନୟନେ ସମସ୍ତେ ଦେଖିବ ॥
ଏ କଥା ଯେବେ ନ ହୋଇବ । କଳି କେମନ୍ତେ ନାଶ ଯିବ ॥
କହିଲୁ ଜମର ଫିଟାଇ । ଆମ୍ଭର କିଛି ଦୋଷ ନାହିଁ ॥

ଏକବିଂଶ ଅଧ୍ୟାୟ :—

ତେତେବେଳେ ସନ୍ଥମାନେ ଆନନ୍ଦ ହେବଇବେ
ସତ୍ୟ ଗୁହାର କଥା ମନରେ ପାଞ୍ଚିବେ
ଗୁଣ୍ଡିଚା ଯାତ୍ରାସ ଚର୍ଚ୍ଚି ତେରଦିନ ହେବ
ଶ୍ରୀମର ଜୁମର ପଦ ଚର୍ଚ୍ଚିରେ ପଡ଼ିବ

ଏହି ତେର ଦିନ ପକ୍ଷ ମଧ୍ୟରେ ଗୁଣ୍ଡିଚା ଲୀଳା ଆରମ୍ଭ ହେବ ।

ସପ୍ତବିଂଶ ଅଧ୍ୟାୟ :—

ଗୁରୁଜନ ଚଉକତି ବୁଲିବେ ସନ୍ଥନେ
ସତ୍ୟଯୁଗ ହେଲା ବୋଲି କରୁଥିବେ ମନେ
ଅଙ୍ଗ ବଙ୍ଗ କଳଙ୍ଗର ସନ୍ଥନ ଭକତ
ଏ ସବୁ ହୋଇବେ ନାଥ ଯେଉଁ ଦିନ ଯୁକ୍ତ
ସମସ୍ତେ ବସିଣ ଚର୍ଚ୍ଚି ବିଚାର କରିବେ
ମେଳା ସାରିଣ ଯେଣ୍ଠାରେ ବାହାର ହୋଇବେ
ମାର୍ଗଶୀର ନବମୀ ଯେ ହେବ ଗୁରୁବାର
ସେ ଦିନ ସମସ୍ତେ ଯେ ହୋଇବେ ବାହାର
ବାଳ ମୁକୁନ୍ଦର ସଳପ୍ତାବ ଶେଷ ହେବ
ସେହି ଦିନ କଳିଯୁଗ ସମାପ୍ତି ହୋଇବ

ସନ ୧୯୭୧ ରେ ମାର୍ଗଶିର କୃଷ୍ଣ ପକ୍ଷ ଗୁରୁବାର ଦିନ ହେଉଅଛି । ଏହି ସମୟରେ କଳିଯୁଗ ଶେଷ ହୋଇଯିବ ବୋଲି ଉପରୋକ୍ତ ପଦ୍ୟାଂଶରୁ ଜଣାଯାଉଅଛି ।

ସେ କଥା ମୋହର ଯେ ଅନ୍ୟଥା ନୋହିବ
ମୋହର ଶ୍ରୀ ମୁଖ କଥା ଯୁଗେ ଯୁଗେ ଥିବ
ମୋହ ପାଦ ପଦ୍ମ ବାବୁ ଛୁଇଁ ଛୁଇଁ ଥିବୁ
ମୂର୍ଖଙ୍କ ଆଗେ ଏ କଥା କେବେଁ ନ କହିବୁ

କଳିଯୁଗ ଲୋକମାନେ ହେବେ ବଡ଼ ନାଶ
ଚତୁର୍ଥ ଭାଗରୁ ଯେ ରହିବ ଅବଶେଷ
ପଣ୍ଡିତ ଜନେ ଶୁଣିଣ କରିବେ ବିଶ୍ୱାସ
ମୂର୍ଖ ଜନେ ହାସ୍ୟ କଲେ ସବେ ଯିବେ ନାଶ

ଏଥିରୁ ଜଣାଯାଉଛି ଯେ ତେର ଦିନିଆ ପକ୍ଷକୁ ଅବଲମ୍ବନ କରି ସେହି ସମୟଠାରୁ ଉପରୋକ୍ତ ଘଟଣା ସବୁ ଘଟିବ । (ଆମ୍ଭ ପ୍ରକାଶିତ ତେର ଦିନିଆ ପକ୍ଷ ପୁସ୍ତକ ପାଠ କଲେ, ଏହି ପକ୍ଷର କି ଭୟାବହ ପରିଣାମ ରହିଛି ତାହା ପାଠକ ବୃନ୍ଦ ଜାଣି ପାରିବେ । ତେରଦିନିଆ ପକ୍ଷ ସଂପର୍କରେ ବହୁ ଶାସ୍ତ୍ରରୁ ଶ୍ଳୋକାଦି ସଂଗ୍ରହ କରି ଉକ୍ତ ପୁସ୍ତକରେ ପ୍ରକାଶ କରାଯାଇ ଅଛି ।)

ଚନ୍ଦ୍ର ବାଣ, ରାମ ବାଣ ଥୋଇବୁ
ଏହି ସାଲଟି ଠିକଣା କରିବୁ
ସେ ଦିନୁ ଉତପାତ ମହୀ ସରିବ
କିଛି ଉଶ୍ୱାସ ହେବ ମହୀ ଭାର ।

ଉପୋରୋକ୍ତ ପଦ୍ୟରୁ ଜଣା ଯାଉଛି ଯେ ଶ୍ରୀ ବୀରକିଶୋର ଦେବଙ୍କର ଚଉଦ ଅଙ୍କ ଠାରୁ ଜନକ୍ଷୟକାରୀ ବହୁ ପ୍ରକାରର ଦୁର୍ଘଟଣା କ୍ରମେ ଦେଖାଯିବ । ଯଥା :—ଚନ୍ଦ୍ର = ୧ + ବାଣ = ୫ + ରାମ = ୩ + ବାଣ = ୫ = ୧୪

ଏହି ଚଉଦ ଅଙ୍କ ଉପୋରୋକ୍ତ ପଦ୍ୟର ଭାବାର୍ଥ ଅଟେ । କାରଣ ଏହି ସମୟରେ ମଧ୍ୟ ତେର ଦିନିଆ ପକ୍ଷ ପଡ଼ି ଥିଲା । ହାଡ଼ି ଦାସ ମାଳିକାରେ ସ୍ପଷ୍ଟ ଭାବେ ଶ୍ରୀ ବୀର କିଶୋର ଦେବଙ୍କ ନାମ ଉଲ୍ଲେଖ ଅଛି, ଯଥା :—

ହାଡ଼ି ଦାସ ନାମକ ଜଣେ ମହାପୁରୁଷ ଯୁଗାନ୍ତସଂପର୍କରେ ନିମ୍ନଲିଖିତ ମତ ଦେଇ ଅଛନ୍ତି ।

## ହାଡ଼ୁଦାସ ମାଳିକା :—

ଶକାବ୍ଦ ଅଠରଶ ଅଠାନବେ । ରବିତିଥି ବସୁ ବର୍ଷେଣ ହେବେ ॥
ଋତୁମାସ ବଗ ନେତ୍ରକୁ ଜାଣ । ଚତୁର୍ଥ ଠିକ ଏ ବାରଙ୍ଗ ଶୁଣ ॥
ବୀରକିଶୋର ଦେବ ସତାଇଶେ । ଏହିଠାରୁ ଠିକ ବୁଝ ବିଶେଷେ ॥
ପାଞ୍ଚ ସହସ୍ର ଯେତେବେଳେ ହେବ । ସମ୍ପୂର୍ଣ୍ଣ ଲୀଳା ପ୍ରକାଶ ପାଇବ ॥
କଳିଯୁଗ ପାଞ୍ଚ ସହସ୍ର ଗଲେ । ବିଷ୍ଣୁ ରାଜୁତି ଯେ କରିବେ ଭଲେ
ସନ ତେରଶ ଚଉରାଶୀ ସାଲେ । ପ୍ରବେଶ ହୋଇବେ କ୍ଷେତ୍ର ମଧ୍ୟରେ

(ଭବିଷ୍ୟତ ବାଣୀ ୩ୟ ଭାଗ ପୃଷ୍ଠା ୮୦ ଓ ୮୧ରୁ ଉଦ୍ଧୃତ)

ହାଡ଼ୁ ଦାସ ତାହାଙ୍କର ଏହି ଲେଖାଦ୍ୱାରା ଜଣାଇ ଦେଇ ଅଛନ୍ତି ଯେ, ଶକାବ୍ଦ ୧୮୯୮ ଓ ସନ ୧୩୮୪ରେ ପାଞ୍ଚ ହଜାର ବର୍ଷ ପରମାୟୁ ବିଶିଷ୍ଟ କଳିଯୁଗଶେଷ ହୋଇଯିବ; ତାପରେ ସତ୍ୟଯୁଗ ବା ବିଷ୍ଣୁଙ୍କ ରାଜତ୍ୱ ଆରମ୍ଭ ହୋଇଯିବ ବୋଲି ସେ ଲେଖିଅଛନ୍ତି । ବର୍ତ୍ତମାନ ଶକାବ୍ଦ ହେଉଛି ୧୮୯୩ । ୧୮୯୮ରୁ ୧୮୯୩ ବାଦ୍‌ଦେଲେ ୫ ବର୍ଷ ମାତ୍ର ଅବଶିଷ୍ଟ ରହିଲା । ସେହିଭଳି ହାଡ଼ୁଦାସଙ୍କ ଲିଖିତ ଉପରୋକ୍ତ ସନ ୧୩୮୪ରୁ ଚଳିତ ବର୍ଷର ସନ ୧୩୭୯ ବାଦ୍‌ଦେଲେ ଅବଶିଷ୍ଟ ୫ ବର୍ଷ ବାକିରହିଲା । ସେତେବେଳେ ବୀର କିଶୋର ଦେବଙ୍କର ସତାଇଶ ଅଙ୍କ ହୋଇଥିବ ।

ଉପରୋକ୍ତ ଉଭୟ ଶକାବ୍ଦ ଓ ସନ ଗଣନାରୁ ପାଞ୍ଚ ବର୍ଷ ମାତ୍ର କଳ୍କୀ ଭଗବାନଙ୍କର ଲୀଳା ପ୍ରକାଶ ପାଇବାକୁ ଅବଶିଷ୍ଟ ରହିଲା । ଏହି ୫ ବର୍ଷ ମଧ୍ୟରେ ଘୋର ଯୁଦ୍ଧ ହୋଇ ବହୁଜନକ୍ଷୟ ହେବାର ପ୍ରମାଣ ଏହାଙ୍କ ଲେଖାରୁ ମିଳୁଅଛି । ଏହି ୫ ବର୍ଷ ପରେ ଅର୍ଥାତ୍ ୧୯୭୭ ଖ୍ରୀଷ୍ଟାବ୍ଦ ପରଠାରୁ ପୃଥିବୀରେ ଶାନ୍ତି ଆସିବ ବୋଲି ଏହାଙ୍କ ଭବିଷ୍ୟତ୍‌ବାଣୀରୁ ଜଣାଯାଏ ।

ଏହି ସମୟରେ ବୀରକିଶୋର ଦେଓ ପୁରୀର ମହାରାଜା ଥିବେ ବୋଲି ଯାହା ଉଲ୍ଲେଖ ଅଛି ଠିକ୍ ସେହିଭଳି ବର୍ତ୍ତମାନ ବୀରକିଶୋର ଦେଓ ପୁରୀର ମହାରାଜା ହୋଇଥିଲେ ୧୯୭୦ସାଲରେ ତାହାଙ୍କର ଅକାଳ ବିୟୋଗ ଘଟିଲା ଏବଂ ଶକାବ୍ଦ ୧୮୯୮ ଓ ସନ ୧୩୮୪ ବେଳକୁ ଏହାଙ୍କର ୨୭ ଅଙ୍କ ହୋଇଥାଆନ୍ତା । ଏହା ଦେଖିଲେ ମହାପୁରୁଷ ହାଡ଼ିଦାସଙ୍କର ଭବିଷ୍ୟତବାଣୀ କୌଣସି-ମତେ ମିଥ୍ୟା ବୋଲି ପ୍ରମାଣିତ ହୋଇ ନ ପାରେ । ଆମ ଶାସ୍ତ୍ରୀୟ ପ୍ରମାଣ ଅନୁଯାୟୀ କଳିଯୁଗର ପରମାୟୁ ୪୮୦୦ ବର୍ଷ ବୋଲି ପ୍ରଥମ ଭାଗ ଭବିଷ୍ୟତବାଣୀରେ ବହୁପ୍ରମାଣ ସହ ଉଲ୍ଲେଖ କରି-ଯାଇଅଛି । କିନ୍ତୁ ଓଡ଼ିଶାର ପଞ୍ଚସଖା ପାଞ୍ଚ ହଜାର ବର୍ଷ ହିସାବରେ ଧରି ନେଇଥିବା କଥା ସେମାନଙ୍କ ମାଳିକାରୁ ଦେଖିବାକୁ ମିଳୁଅଛି । (ଆର୍ଯ୍ୟଭଟ୍ଟଙ୍କ ମତାନୁଯାଇ କଳିଯୁଗ ୪୮୦୦ ବର୍ଷ ଶେଷ ହେବା ସମୟକୁ ପଞ୍ଚଶଖାଙ୍କର ମତାନୁଯାୟୀ କଳିଯୁଗାବ୍ଦ ୫୦୦୦ ବର୍ଷ ଶେଷ ହେଉଅଛି ।) ଅଚ୍ୟୁତା ନନ୍ଦଙ୍କ ମତରେ ତେରଦିନ ପକ୍ଷ ପଡ଼ିବା ଦିନ ପୂର୍ବରୁ ସତ୍ୟଯୁଗ ଆରମ୍ଭ ହୋଇଯାଇଛି । ଆରମ୍ଭ ହୋଇ ଯାଇଥିବା ଅନ୍ୟାନ୍ୟ ଯୋଗ ୧୯୬୭ ଓ ୧୯୬୮ରେ ପଡ଼ିଥିବା ବିଷୟ ଏଥି ପୂର୍ବରୁ ଏହି ପୁସ୍ତକରେ ଲେଖିଅଛୁ ।

ଅମର ଜୁମରରେ ଲେଖାଅଛି :—

ରୁ ଦ୍ରୁଠାରୁ ଊନବିଂଶ ପର୍ଯ୍ୟନ୍ତ ସେଠାରେ
ସ୍ଥାପନ ହୋଇବେ ଜନ ସେବାବ୍ଦ ଭାବରେ,
ଏଥି ମଧ୍ୟେ କୁଳ ଗୋଷ୍ଠ କିଛି ନ ରହିବ
ମହନ୍ତ ଜନମାନଙ୍କୁ ବହୁ ଲଜ୍ଜା ହେବ ।

ବୀର କିଶୋର ଦେବଙ୍କର ରୁଦ୍ର ଅର୍ଥାତ୍ ଏକାଦଶ ଅଙ୍କ ଠାରୁ ଆରମ୍ଭ କରି ଊନବିଂଶ ଅଙ୍କ ମଧ୍ୟରେ ଭଗବାନ କଳ୍କି

ଲୋକ ସେବା କାର୍ଯ୍ୟ ଗୁପ୍ତ ଭାବେ କରିବେ ଏବଂ ଏହି ସମସ୍ତ ମଧ୍ୟରେ ମ୍ଳେଚ୍ଛ ଭାବାପନ୍ନ ବ୍ୟକ୍ତିମାନେ ବିଶେଷ ଭାବେ ବଢ଼ିଯିବେ ଓ ଧାର୍ମିକ, ବିବେକୀ ମହତ୍ ଜନମାନଙ୍କୁ ଅପମାନ ମିଳିବ ।

ପନ୍ଦର ଯାଇଣ ଯେବେ ସତର ଆସିବ
ପୂର୍ବ ଦିଗୁ ପାରାବାର ମାଡ଼ିଣ ଆସିବ,

ଶ୍ରୀ ବୀର କିଶୋର ଦେବଙ୍କର ପନ୍ଦର ଯାଇ, ସତର ଅଙ୍କ ମଧ୍ୟରେ ସମୁଦ୍ର ଜଳ କୂଳ ଲଙ୍ଘନ କରିବାର ପ୍ରମାଣ ଏଥିରୁ ମିଳୁଛି; ସନ ୧୯୭୦ରେ ୧୭ ଅଙ୍କ ହେଲା (ପୁରୀ ମହାରାଜାଙ୍କର ଷୋହଳ ଅଙ୍କ ନ ଥାଏ) ଏହି ୧୭ ଅଙ୍କରେ ପୂର୍ବ ବଙ୍ଗରେ ସମୁଦ୍ର ମାଡ଼ି ୨୦ ଲକ୍ଷରୁ ଊର୍ଦ୍ଧ୍ୱ ଜନ ପ୍ରାଣ ହରାଇଲେ । ଏଣୁ ଅଚ୍ୟୁତଙ୍କର ଏହି ଲେଖା ସତ୍ୟରେ ପରିଣତ ହୋଇ ଅଛି ।

କେତେ ଦେବା ଦେବୀ କେତେ ସ୍ଥାନେ ଗୁପତରେ
ଲୁଚି ରହିଥିବେ ହେତୁ ରଖ ହୃଦପୁରେ ।
ମୋ ନିଜ ସ୍ଥାନୁ ମୋ ପ୍ରତିମା ଉଠିଯିବ
ନାମକୁ କେବଳ ଏକା ଧାମ ରହିଥିବ ।
ଗୁପତ ଭାବରେ ଅନ୍ୟ ସ୍ଥାନକୁ ମୁଁ ଯିବି,
କମଳ ପୁରରେ ଯାଇଁ ତପସ୍ୟା କରିବି ।
ସେ ପୁର ଜଣା ନ ଥିବ କାହାକୁ ଅର୍ଜୁନ
ତୁମ୍ଭେ ପାଅଭାଇ ଥିବ ମୋ ସଙ୍ଗରେ ଜାଣ ।
ସେହି ଦିନୁ ଇନ୍ଦ୍ର ଅଳ୍ପ ଜଳ ବରଷିବ
ଅର୍ଦ୍ଧେ କୃଷି ହୋଇ ଅର୍ଦ୍ଧଭାଗ ନାଶଯିବ ।
ତହିଁ ବାରେ ବାରେ ବାୟୁ ବହିବ ପ୍ରବଳ
ସକଳ ସ୍ଥାନରେ ବୃକ୍ଷେ ଲୋଟିବେ ମହୀର ।

କଳ୍ପବଟରୁ ଶାଖା ଛିଡ଼ି ପଡ଼ିବ ସେ କାଳେ
ନାନାଦି ଅକର୍ମ ମାନ ହେବ କ୍ଷେତ୍ରବରେ ।
ଲବଣ ତାପରେ କୃଷିମାନ ଯିବ ଜଳି
ପ୍ରାଣୀମାନେ ଡାକୁଥିବେ ରଖ ବନମାଳୀ ।
ସେହି ଦିନରୁ ଦୁର୍ଭିକ୍ଷ ପଡ଼ିବ ଅର୍ଜ୍ଜୁନ
ବହୁତ ଅଭାବ ସେ କାଳରେ ହେବ ଧାନ୍ୟ ।
ମୋ ସେବାର ଘର ପାଣ୍ଡୁ କୁମର ହେବବ
ଓଡ଼ରାଷ୍ଟ୍ର ଦେଶେ ନାନା ଉପଦ୍ରବ ହେବ ।
ବଡ଼ ଦେଉଳରେ ମୂର୍ତ୍ତି ନ ରହିଣ ବୀର
ବାହାର ହୋଇବ ଦେଖି ନର ଅତ୍ୟାଚାର ।
ଲଣ୍ଡା ଦେଉଳରୁ ପୁଣି କ୍ଷେତ୍ରବର ଯାଏ
ଏହି ସୀମାରେ ବିହାର କରୁଥିବ ସ୍ନେହେ ।
କଳିଯୁଗ ଯାହା କିଛି ଖେଳ ହେବ ପାର୍ଥ
ଏହାର ମଧ୍ୟରେ ଜାଣ ହେବ କୁନ୍ତୀସୁତ । (ଚତୁଃ ପଟଳ)

ଲଣ୍ଡା ଦେଉଳ ଯାଜପୁର ବୈତରଣୀ ନଦୀ କୂଳରେ ଅବସ୍ଥିତ । ସେଠାରୁ ଅର୍ଥାତ ଯାଜପୁର ଠାରୁ କ୍ଷେତ୍ର ଯେ ପୁରୀ କ୍ଷେତ୍ର ଯାଏଁ ଭଗବାନ କଳ୍କି ଓ ଦେବ ଦେବୀଙ୍କର ଲୀଳା ଖେଳା ହେବା ସୂଚନା ଏଥିରୁ ମିଳୁଅଛି । ସେହି ସମୟ ଆସି ଉପସ୍ଥିତ ହୋଇ ଯାଇଛି ବୋଲି ଏହି ପୁସ୍ତକ ଲିଖିତ ବିଷୟଗୁଡ଼ିକ ପାଠ କଲେ ଜଣାଯାଉଅଛି ।

ସମ୍ବତ୍ସର ପଞ୍ଚାସହସ୍ର କଳି ଶେଷ ହୋଇବ
ସତ୍ୟ ଯୁଗ ଆଦ୍ୟ ପ୍ରକାଶ ଶୁଭ ଯୁଗ ହୋଇବ
ସାଧୁ ସନ୍ଥମାନେ ବସିବେ ସଭା ଆରମ୍ଭ କରି
ସେହି ସମସ୍ତଙ୍କୁ ପୂଜିବେ ପଞ୍ଚୁଆର ଆଚାରୀ

ହରି ହରି ଶବ୍ଦେ ମାତିବେ ହରି ଭକତମାନେ
ହରଷ ହୋଇବେ ହୃଦରେ ଦୁଃଖୀ ଦରିଦ୍ରମାନେ
ଫିଟିବ ପ୍ରଜାଙ୍କ କଷଣ ଦୁଷ୍ଟ ହୋଇବେ ଶେଷ
କହେ ହୃ ଉଦାସ ଭଣିଲେ ଆଗତ ଯେ ଭବିଷ୍ୟ

# ଯଶୋବନ୍ତ ମାଳିକାରୁ ଉଦ୍ଧୃତ

## ଶ୍ରୀ ଭଗବାନ ଉବାଚ

ଶୁଣ ହେ ଦାସେ ମୋ ବଚନ । କହିବି ଗୁପ୍ତ କଥା ମାନ ॥
ତୁ ଯେଣୁ ମୋହର ବିଶ୍ୱାସ । କହିବା ସକଳ ସନ୍ଦେଶ ॥
କହିବା ସବୁ ବୁଝାଇଣ । ଶୁଣ ହେ ଦାସେ ତୁମ୍ଭେ ପୁଣ ॥
ଯେ ପ୍ରାଣୀ ଯେ କର୍ମ କରିବ । ସେ ଫଳ ଅବଶ୍ୟ ଭୁଞ୍ଜିବ ॥
ଗୁରୁ ଦେବତା ନ ମାନନ୍ତି । ତେଣୁ ଯେ ଦଣ୍ଡ ପାଉଥାନ୍ତି ॥
ଗର୍ବ ଗଞ୍ଜିଇ ତାହାଙ୍କର । ଗର୍ବ ଗଞ୍ଜନ ବାନାମୋର ॥
ନୃପତି କୁଳଧର୍ମ ଯାହା । କେବେହେଁ ନ ପାଳନ୍ତି ତାହା ॥
ବାଇଶ ଅଙ୍କରେଟି ଯାଇ । ବୀର କିଶୋର ହେବ ବାଇ ॥
ଯେ ରାଜା ସମସ୍ତେ ପଠାଣ । ମୋହନା ମୋଗଲ ସମାନ ॥
ବହୁ ସହସ୍ର ଅଶ୍ୱ ସଙ୍ଗେ । ବାହି ଆସିବ ନାନାରଙ୍ଗେ ॥
ବାଇଶ ଅଙ୍କରେ ବାହିବ । ପଚିଶ ଅଙ୍କେ ପହଞ୍ଚିବ ॥
ଏଥି ଭିତରେ ଯେ ତରକ । କହିବା ଶୁଣ ଯଶୋବନ୍ତ ॥
ବହୁତ ପ୍ରମାଦ ପଡ଼ିବ । କେହି କାହାକୁ ନ ମାନିବ ॥
ଅର୍ଜିଲା ଧନ ପର ନେବ । କହିଲେ ତର୍କ ଯେ କରିବ ॥
ଏମନ୍ତେ ହୋଇବେଟି ଜାଣ । ଠାବେ ଠାବେ ବହୁତ ଜନ ॥
ଅବଳା ସ୍ତ୍ରୀଏ ଯେତେ ଜଣ । ବାଟରେ କରିବେ ରମଣ ॥
ଧନ ଲୋଭରେ ଜାତି ଦେବେ । ଚଣ୍ଡାଳ ସଙ୍ଗରେ ମାତିବେ ॥

ତାହାଟି ସତ୍ୟ ନ ପଶିଲା । ମାୟା ଭିଆଣ ମୂର୍ତ୍ତି କଲା ॥
ଅନେକ ହନ୍ଦ ଉପୁଜିବ । ନିଗୁଢ଼ ସଂଗ୍ରାମ ହୋଇବ ॥
ଲାଗିବ ଘରେ ଘରେ କଳି । ସମସ୍ତେ ହୋଇବେ ବାଉଳି ॥
କେହି ଯେ ଭଲ ନ ରହିବେ । ଅନେକ ହନ୍ଦରେ ପଡ଼ିବେ ॥
ଦମନ ପଡ଼ିବଟି ପୁଣ । ଦାସେ ଯେ ଶୁଣ ମୋ ବଚନ ॥
ହୋଇବ ନିଗୁଢ଼ ସଂଗ୍ରାମ । କେହି ନୋହିବେ ତାକୁ କ୍ଷମ ॥
ଅପୂର୍ବ ସଂଗ୍ରାମ ହୋଇବ । କାହାର ହାଲ ନ ରହିବ ॥
ଯୋଗ୍ନୀ ବ୍ରହ୍ମାଣ୍ଡୀ ଯେ ମାତିବେ । ଅନେକ ଜନ ନ ଜାଣିବେ ॥
ପୂର୍ବ ପଶ୍ଚିମ ଯେ ଉତ୍ତର । ଦକ୍ଷିଣ ଦିଗର ଈଶ୍ୱର ॥
ଚାରି ଦିଗରୁ ଶବ୍ଦ ହେବ । ପୃଥ୍ୱୀରେ ନିର୍ଘାତ ପଡ଼ିବ ॥
ସମସ୍ତେ ଏକାକାର ହେବେ । ଗୁରୁ ଗଉରବ ନ ମାନିବେ ॥
ପିତୃଦ୍ରୋହୀ ଯେ ପାପୀ ହେବେ । ପର ପୁରୁଷେ ଧନ ନେବେ ॥
ସେ ନାରୀମାନେ ହେବେ ନାଶ । ରହିବ ନାହିଁ ତାଙ୍କ ବଂଶ ॥
ଏ ରୂପେ ହୋଇବେଟି ଜନ । ଦାସେ ଯେ ଶୁଣ ମୋ ବଚନ ॥
ଯଶୋବନ୍ତ ଯେ ହେଲେ ତୋଷ । କହଇ ବଳରାମ ଦାସ ॥

ଅବସର ସମୟରେ ବିଳାସ ବ୍ୟସନରେ ସମୟ ଅତିବାହିତ ନ କରି ଏହି ଘଡ଼ି ଦଣ୍ଡ ମୁହୂର୍ତ୍ତରେ କେବଳ ନିଜ ନିଜ ଧର୍ମକୁ ପୂର୍ଣ୍ଣପ୍ରାଣରେ ପାଳନ କରି ସବୁ ସମୟରେ ଈଶ୍ୱର ନାମ ସଙ୍କୀର୍ତ୍ତନାଦି ସତ୍ କର୍ମ ଦ୍ୱାରା ସାଧାରଣ ଜନତାଙ୍କ ମନ ଧର୍ମ ପ୍ରତି ଆକୃଷ୍ଟ କରାଇବା ଉଚିତ । ନାମ ସଙ୍କୀର୍ତ୍ତନ, ଜପ ଈଶ୍ୱରୋପାସନା ଦ୍ୱାରା ମନରେ ସତ୍ ଚିନ୍ତା ଓ ସତ୍ କର୍ମ (ଆଚରଣ) କରିବାର ପ୍ରବୃତ୍ତି ଜାଗ୍ରତ ହୋଇଥାଏ । ରାମରାଜ୍ୟ ପ୍ରତିଷ୍ଠା କରିବାକୁ ହେଲେ ପ୍ରତ୍ୟେକେ ଶ୍ରୀରାମଙ୍କ ଭଳି ଗୁଣ ଓ ଚରିତ୍ରରେ ବିଭୂଷିତ ହେବାକୁ ପଡ଼ିବ । ଆଧ୍ୟାତ୍ମିକ ସାମ୍ୟବାଦ ରାମରାଜ୍ୟ ବା ଈଶ୍ୱରଙ୍କ ରାଜତ୍ୱ ପୃଥିବୀକୁ ଆସୁଅଛି । ଖ୍ରୀଷ୍ଟଧର୍ମଗ୍ରନ୍ଥ ବାଇବେଲ ଓ ମୁସଲମାନ

ଧର୍ମଗ୍ରନ୍ଥ କୋରାନ ମତରେ ଏହାକୁ ଈଶ୍ୱର ଯୁଗ ବୋଲି କହିଛନ୍ତି । ଏହି ସତ୍ୟଯୁଗର ସନ୍ଧ୍ୟା ସମୟ ବର୍ତ୍ତମାନ ଆସିଯାଇଛି (ସତ୍ୟ-ଯୁଗର ସନ୍ଧ୍ୟା କାଳ ହେଉଛି ଏକଶତ ବର୍ଷ ଏଥିରୁ ୨୮ ବର୍ଷ ଭୋଗ ହୋଇଗଲାଣି । ଏ ସମ୍ପର୍କରେ ପ୍ରାଞ୍ଜଳ ଭାବେ ଜାଣିବାକୁ ହେଲେ ଭବିଷ୍ୟତବାଣୀ, 'ତେର ହିନଆ ପକ୍ଷ' ଓ କଲ୍କି ଅବତାର ୨ୟ ଭାଗ ପୁସ୍ତକ ପାଠ କଲେ ବୁଝି ପାରିବେ ।) ଏଣୁ କରି ପ୍ରତ୍ୟେକ ନିଜକୁ ସେହି ଅମରତ୍ତ୍ୱ ପ୍ରାପ୍ତି ପାଇଁ ପ୍ରସ୍ତୁତ କରନ୍ତୁ ବୋଲି ପଣ୍ଡିତେରର ଶ୍ରୀମା' ନିର୍ଦ୍ଦେଶ ଦେଇଛନ୍ତି, ନିଜକୁ ପ୍ରସ୍ତୁତ କରିବା ପାଇଁ ନିଜ ନିଜ ଧର୍ମାନୁସରଣ ଏବଂ ଈଶ୍ୱରୋପାସନାହିଁ ଏକମାତ୍ର ପନ୍ଥା ।ଯୁଗର ଏହି ଘଡ଼ି ସନ୍ଧି ମୁହୂର୍ତ୍ତରେ, ପାପ ଗୁରୁ, ଦାରିଦ୍ର୍ୟ, ନିଷ୍ଠୁରତା, ନରହତ୍ୟା, ବିଶ୍ୱାସ ଘାତକତାର ମାତ୍ରା ଏତେ ମାତ୍ରାରେ ବଢ଼ିଯାଇଛି ଯେ, କୌଣସି ଯୁଗରେ କେବେ ହେଲେ ଶୁଣା ନ ଥିଲା । ଏହାର ଉତ୍କଣ୍ଠତା 'ତେର ହିନଆ ପକ୍ଷ' ପରେ ଅଧିକ ମାତ୍ରାରେ ବଢ଼ି ଯିବା ପ୍ରମାଣ ମିଳୁଅଛି । ଏହା ସାଙ୍ଗକୁ ପ୍ରାକୃତିକ ବିପର୍ଯ୍ୟୟ (ଝଡ଼, ବର୍ଷା, ବନ୍ୟା, ସମୁଦ୍ର କୂଳଲଙ୍ଘନ, ଭୂକମ୍ପ, ଅଗ୍ନେୟଗିରି ଉଦ୍‌ଗୀରଣ, ଅଗ୍ନି ଉତ୍ପାତ) ହେବାର ସୂଚନା ମର୍ତ୍ତ୍ୟ ମାନଙ୍କରେ ରହିଅଛି । ବିଭିନ୍ନ ପ୍ରକାରର ଦୁର୍ଘଟଣା, (ରେଳଗାଡ଼ି, ବ୍ୟୋମଯାନ) ଆଦି ପ୍ରାୟ ପ୍ରତି ମାସରେ ଲାଗି ରହିଛି, ସେହି ଭଳି ପୃଥିବୀରେ ଯୁଦ୍ଧ ଓ ବିପ୍ଳବ ଲାଗି କ୍ରମେ କ୍ରମେ ପ୍ରତି ବର୍ଷ ବହୁ ଜନ କ୍ଷୟ ହେବାରେ ଲାଗିଛି । ଅଭାବ, ଦାରିଦ୍ର୍ୟରେ ପଡ଼ି, ଅଖାଦ୍ୟ ଖାଇ, ରୋଗ ଶୋକରେ ବହୁଲୋକ ପ୍ରପିଡ଼ିତ ହେଉ ଅଛନ୍ତି । ଏ ଭଳି ଦୁଃଖ ଦାୟକ, ବିପଦଜନକ ମୁହୂର୍ତ୍ତରୁ ରକ୍ଷା ପାଇବା ପାଇଁ ଏକମାତ୍ର ଈଶ୍ୱରହିଁ ଭରସା, ଈଶ୍ୱରୋପାସନା ବିମୁଖ ଓ ଆଧ୍ୟାତ୍ମିକ ସାମ୍ୟବାଦର ବିରୋଧୀ ହେଲେ ପୃଥିବୀ ଧ୍ୱଂସ ହୋଇଯିବ ଏଥିରେ ସନ୍ଦେହ ନାହିଁ ।

---

ଦି ଜନତା ପ୍ରେସ, ମତ୍ତିମନ୍ଦିଆ ବଜାର; କଟକ-୨ (୧୯୭୧ ମେ)